ନବସାକ୍ଷର ସାହିତ୍ୟମାଳା

# ଅକାଳକୁ ଆମେ ଡାକି ଆଣିଛୁ

ସହଦେବ ସାହୁ

ଅଳଙ୍କରଣ

ଛନ୍ଦାଚରଣ ଆଚାର୍ଯ୍ୟ

ରେଜିନାଲ୍ଡ ଗୋମ୍ସ



ନ୍ୟାସ୍ନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ଅକାଳକୁ ଆମେ ଡାକି ଆଣିଛୁ

ଗୋବରା ଝାଳ-ନାଳ ହୋଇଗଲାଣି । ଖାଲି ଏପାଖ ସେପାଖ ଦଉଡୁଛି । ଆଜି ବି ଯୋଗକୁ ବସ୍‌ଟା ଡେରି କରୁଛି । ମାଧଟା ଯାଇଛି ଯେ ଫେରୁନାହିଁ ।

ଗେଟ୍‌ଟା ତିଆରି ହୋଇଗଲାଣି । କି କାଳ ପଡ଼ିଲା ଯେ ଦେବଦାରୁ ପତର କି ଆମ୍ବ ପତର ମିଳୁନାହିଁ । ଏ ଗାଁ ଲୋକେ କଣ କିଛି ରଖୁଛନ୍ତି ? ସବୁ ତ ଜାଳି ଦେଲେ । ଏ କରତ କଳବାଲା ତ ଉସୁକୋଉଛନ୍ତି । ଖାଲି ପଟା କରିବେ । ସହରିଆ ବାବୁଙ୍କ କାଠ ଜିନିଷ ପତର ହେବ ।


ଗେଟ୍‌ଟା ତିଆରି ହୋଇଗଲାଣି ।

ଯାହାହେଉ ପିଲା ବଜାରରୁ ପାଲାଷ୍ଟିକ୍ ପତର କିଣି ଆଣିଥିଲେ । ଝୁଲେଇ ଦେଇଛନ୍ତି । ଦୂରରୁ ତ ଠିକ୍ ପତର ଭଳି ଦିଶୁଛି । ଝୁଲେଇବା ବି ସହଜ । ବାର ବାର ଲଗୋଉଥା, ସେଇମିତି ତାଜା ଥିବ,ମଝିରେ ମଝିରେ ଧୋଇ ଦିଅ । ଗଛ ପତର ନୁହେଁ ଯେ ଶୁଖିଯିବ, ଝଡିଯିବ କି ଚିରିଯିବ ।

ଗୋବରା ଗାଁର ମେୟର । ସବୁ କଥାରେ ତାକୁ ଲୋକେ ପଚାରନ୍ତି । ଗୋବରା ମନରେ ଭାଳେଣି । ଖାଲି ଗେଟ୍ ହେଲେ କଣ ହେବ ? ମନ୍ତ୍ରୀଙ୍କ ପାଇଁ ହାର କାହିଁ ? ଫକିରା ଏତିକିବେଳେ ପହଞ୍ଚିଗଲା । ଗୋବରା ଭାବିଲା, ଫକିରାଠୁ କିଛି ଖବର ମିଳିବ । କିରେ ତୁ ବସ୍‌ଷ୍ଟାଣ୍ଡ ଆଡୁ ଆସିଲୁ କି ? ଗୋବରା ପଚାରିଲା ।

ହଁ । ଏବେ ତ ବସ୍‌ଟା ଗଲା । ଫକିରା କହିଲା ।

ଏ ମାଧଟା ସେତେବେଳୁ ଗଲା ଯେ ଫେରିଲା ନାହିଁ । ଗୋବରାର ଦୁଃଖ ଫକିରା ବୁଝିଲା ।

କଟକରୁ ଫୁଲହାର ଆସିଲେ, ମନ୍ତିରୀଙ୍କୁ ପାଛୋଟି ଆଣିବ । ଫୁଲହାର ଦେଇ ନ ପାରିଲେ ଗୋବରାର ବଦନାମ ।

ଫକିରା କହିଲା, ଗୋବରା ଭାଇ । ଯୁଗ ବଦଳିଗଲାଣି ପରା । ଆଉ କଣ ବାପ ଅଜାଙ୍କ ଯୁଗ ଅଛି ? ଆଜିକାଲିକା ଲୋକେ ଠାକୁର ପୂଜା କରୁଛନ୍ତି କି ? ସେତେବେଳେ ବାଡ଼ିରେ ଗୋଟିଏ


ଏ ଗାଁ ଲୋକେ କ'ଣ କିଛି ରଖୁଛନ୍ତି ? ସବୁ ତ କାଟି ଦେଲେ ।



ତୋଟାଟା ଥିଲା ବୋଲି ସୁଲୁସୁଲିଆ ପବନ ବହୁଥିଲା

ଦୁଇଟା ଫୁଲଗଛ ଥିଲା । ଏବେ ଯୁଆଡ଼େ ଦେଖ, ଖାଲି ଘର ଆଉ ଘର । ଚାରିଆଡ଼େ ଖାଲି ଲୋକ ହାଉଯାଉ । ଯେତେ ପାଟି ସେତେ ହାଣ୍ଡି । ହେଇ ଦେଖୁନା ଆମ ତୁମ ଭଳି ଘରେ ଦିନକୁ ତ ଦି ତିନି କିଲୋ କାଠ ଜଳୁଛି । ଦେବଦାରୁ ତ ଢ଼େଙ୍ଗା ଗଛ, ଛ ମାସ ବି ଜାଳ ହେଉ ନାହିଁ । ବଡ଼ ବଡ଼ ଆମ୍ବ ଗଛ ତ ଦେଢ଼ ବରଷ ଯାଉନି ।

ଫକିରା କହି ଚାଲିଥାଏ । ଦେଖୁନା ଗୋବରା ଭାଇ । ଆମରି ଆଖିଆଗରେ କଣ ହୋଇଯାଉଛି ? ଦେବୀ ତୋଟାଟା ତ ବରଷକ ଭିତରେ ସଫା ହୋଇଗଲା । ବାଉଁଶ ବଣ ତ କାଗଜ କଳକୁ ଗଲା, ବଡ ବଡ ଗଛଗୁଡ଼ାକ ରାତାରାତି ସାଫ୍ । ଏବେ ତ ଶୁଣୁଛି,' ତୋଟାରେ ଘର ତିଆରି ହେବ । ତୁ କହିଲୁ । ତୋଟାଟା କେଡେ କାମ ଦେଉ ନଥିଲା ? ଅକାଳେ ସକାଳେ ତୋଟାରେ ବସିଗଲେ କେଡେ ଆରାମ୍ ଲାଗୁଥିଲା । ମିଣିପୀଲୋକେ ସଞ୍ଜ ନ ହେଉଣୁ ପତର ସାଉଁଟି ନେଉଥିଲେ । ରାତିରେ ଜାଳ ହେଉଥିଲା । ତୋଟାଟା ଥିଲା ବୋଲି ସୁଲୁସୁଲିଆ ପବନ ବହୁଥିଲା । ଖରାବେଳେ ସପ ପକାଇ ଗଡ଼ିଯାଅ । କି ଆରାମ । ଏବେ ଦେଖୁନା ? ସେଆଡୁ ଖାଲି ଗରମ ପବନ ବୋହୁଛି । ଖରାବେଳେ ତ ନିଆଁ ଜଳୁଛି । ସିଆଡେ ଅନେଇଲେ, ପବନ ନାଚୁଛି । ବହକାଏ ପବନ ସେଆଡୁ ଆସିଗଲା ତ ମେଞ୍ଚାଏ ଧୂଳି ଘରେ ପଶୁଛି । ଆଗରୁ କଣ ଏମିତି ଥିଲା ? ଆମେସବୁ ଗାଁଆଟାକୁ ଟାଙ୍ଗରା କରିଦେଲେଣି ।

ଆଉ ଗୋଟିଏ କଥାକୁ ନଜର ଦେଇଛୁ ? ତୋଟା ଭିତର କୂଅଟା ଏବେ ଶୁଖିଲା । ତୋଟା ଥିଲା, କୂଅଟା ଠିକ୍ ଥିଲା । ଗଛ ଗଲା ତ, ପାଣି ବି ଗଲା । ଏ ସବୁ ଆମ କରମ ଦୋଷ ।

ଗୋବରା ଭାବୁଥିଲା ଆଜିକାଲି କଣ ନ ଘଟୁଛି । ଏତିକିବେଳେ ତା ପୁତୁରା ପହଞ୍ଚିଲା । ଦୌଡ଼ି ଦୌଡ଼ି ଧଁ ସଁ । କିରେ ଭଗିଆ ଏତେ ଧଁ ସଁ କାହିଁକି ? ଗୋବରା ପଚାରିଲା ।

ଦାଦା । ଚିଆଁକୁ ଚିଲ ଝାମ୍ପି ନେଲା । ଯାକୁ ନଗେଇ ଛଅଟା ଚିଆଁ ଗଲା । ଆଉ ଗୋଟିଏ ରହିଛି । ମୁରୁଗୀଟା ଖାଲି ବୋବୋଉଛି ।

ଗୋବରା ବୁଝେଇଲା । ଏତେ ବାଉଳି କାହିଁକି ? ପୋକଯୋକ ଲାଗି ମୁରୁଗୀ ଛୁଆ ଧରି ପଦାକୁ ଯିବ । ନହେଲେ ଖାଇବ କଣ ? ଆମକୁ ତ ଚାଉଳ ମିଅଣ୍ଟ, ଚିଆଁକୁ ଖୁଦ ଦବ କିଏ ?

ଫକିରା ନୂଆ କଥାଟିଏ ଆରମ୍ଭ କରିଦେଲା । କହିଲା, ଗୋବରା ଭାଇ । ଗାଆଁରେ ଏବେ ତ କୁକୁଡ଼ା ବତକ ଦେଖାଯାଉ ନାହାନ୍ତି । ଆଗେ କେତେ ନ ଥିଲେ ? ବନ୍ଧୁ ବେଭାର କିଏ ଆସିଲେ ତ, ସେଇକ୍ଷଣି କୁକୁଡ଼ାଟିଏ ମାରିଦିଅ । ଆଇଁଷ, ପୁଣି କୁକୁଡ଼ା । ବେଶ୍ ଖୁସି ! ଆଜିକାଲି ଦେଖୁନା ? କଟକ ପଠେଇ ଫାରମ କୁକୁଡା ଆଣୁଛୁ । ସେଗୁଡ଼ାକ ପୁଣି ଚେମଡ ଲାଗୁଛି ।

ଗୋବରା ଗାଆଁର ମେମ୍ବର ହେଲାଦିନଠୁ ବହୁତ କଥା ଜାଣିଲାଣି । ସେ ଜାଣିଛି, ବଢ଼ନ୍ତା ପିଲାକୁ ଅଣ୍ଡା ଦେବା କଥା । ପିଲାର ବୁଦ୍ଧି ବଢ଼ିବ । ସେ କହିଲା, ଆଗେ ଆମେ ଅଣ୍ଡା ଛୁଉଁ ନଥିଲୁ, ଆଉ



କୁକୁଡ଼ା ଅଣ୍ଡା ବହୁତ ମିଳୁଥିଲା । କେତେ ଚିଆଁ କରିବ କର । ଏବେ କୁକୁଡ଼ା ତ ନାହିଁ, ଅଣ୍ଡା ମିଳୁଛି କୋଉଠୁ ?

ଫକିରା ହଁ କଲା । ପୁଣି କଥାର ଖିଅ ଧରିଲା ।

ଚାରିଆଡ଼େ ତୋଟା ଥିଲା ଯେ ଗଛତଳେ ପୋକଯୋକ ବଢୁଥିଲେ । ଗଛତଳେ କି କୁକୁଡ଼ା ଚିଆଁ ଲୁଚିଯାଉଥିଲା । ଏବେ ତ ଚାରିଆଡେ ମେଲା । ଉପରୁ ଚିଲ ଦେଖିପାରୁଛି । ଝାମ୍ପି ନେଉଛି । ଗଛ ନାହିଁ କି ଡାଳପତର ନାହିଁ । ଚିଲକୁ ଅଟକାଇବ କିଏ ?

ଆଉ ଗୋଟିଏ କଥା ଗଛ ନାହିଁ ବୋଲି ମାଟି ତାତୁଛି । ପୋକଯୋକ ଭୂଇଁ ଉପରେ ରହୁନାହାନ୍ତି । ପୋକଯୋଗ ଖୋଜିବାକୁ ମୁରୁଗୀ ଦୂର ଦୂରାନ୍ତ ଯାଉଛି । ବାଟରେ ବଇରି ତ ଅନେଇ ରହିଛନ୍ତି ।

ଗୋବରା କହିଲା, ଫକିରା ତୁ ଯାହା କହୁଛୁ ସବୁ ସତ ଯେ । ଆମେ ତ ସେ ଦିନ ଗାଆଁରେ ମିଟିଙ୍ଗ୍ କଲେ । ଚାରିଆଡ଼େ ଗଛପତର ଲଗାଯିବ ବୋଲି ଠିକ୍ କଲେ । ମାଗଣା ଚାରା ବି ଆସିଲା । ଦେଖୁନ୍ତୁ, ଅଧାରୁ ବେଶି ମରିଗଲାଣି । କିଏ ତ ପାଣି ଟୋପାଏ ଦେଉନାହାନ୍ତି । ସମସ୍ତେ ଖାଲି କହୁଛନ୍ତି । କାମ କିଏ କରୁଛି ?



ଚିଆଁକୁ ଚିଲ ଝାମ୍ପି ନେଲା । ଯାକୁ ନଗେଇ ଛଅଟା ଚିଆଁ ଗଲା ।

ଫକିରା କହିଲା, ଲୋକଙ୍କର ବି ଅସୁବିଧା ଅଛି । ଆଗେ ଯେତିକି ତଳେ ପାଣି ମିଳୁଥିଲା ଏବେ କ'ଣ ମିଳୁଛି ? ମୋ ବୋଉ କହୁଥିଲା, ସେ ଯେତେବେଳେ ଏ ଗାଆଁକୁ ଆସିଲା, ଆମ କୂଅରେ ଦଶହାତରେ ପାଣି ମିଳୁଥିଲା । ଯା ଭିତରେ ଦି ଦି ଥର ଗହୀର କଲୁଣି । ଏବେ ତିରିଶ ହାତରେ ପାଣି । କେତେ ହଇରାଣ କହିଲୁ ? ଏବେ ନଳକୂଅ ହେଉଛି । ହେଲେ କ'ଣ ହେବ ? ସାରା ଗାଆଁରେ ତ ଗୋଟିଏ । ଏ ପଟରୁ ସେ ପଟ । ଯାଉଛି କିଏ ? ଗଛ ବଞ୍ଚିବ । ବଡ଼ ହେବ । ଉପକାର ମିଳିବ । ଏବଠୁ ଭାବୁଛି କିଏ ?

ଉଆଡ଼ ମେମ୍ବର ହେଲାଦିନୁ ଗୋବରା ବହୁତ ଅଫିସର ସାଙ୍ଗରେ ମିଶିଛି । କେତେ କଥା ଜାଣିଛି । ସେ କହିଲା, ଫକିରା ତୁ ନଳକୂଅ ଖୋଳାହେଲା ଦିନ ଥିଲୁ ଟି ? ସେ ମିସ୍ତିରୀ କ'ଣ କହୁଥିଲା ? ମନେ ଅଛି ଟି ? ଗଛ ଥିଲା ଯେ ଅଳପ ଗହୀରରେ ପାଣି ମିଳୁଥିଲା । ଚେର ପରା ଭୂଇଁ ତଳୁ ପାଣି ଟେକି ଆଣେ । ଗଛରତ ପାଣି ଦରକାର । ସେଇଥିଲାଗି ଗଛମୂଳ ଭୂଇଁ ଓଦା ଥାଏ । ଗୁଡ଼ାଏ ଗଛ ଥିଲେ ଗୁଡ଼ାଏ ଚେର । ବହେ ଜାଗାରେ ପାଣି ଟାଣି ହୋଇ ରହିବ । ସେଇଥିଲାଗି ପାଖରେ ବଗିଚା ଥିଲେ ଅଳପ ଗହୀରରେ ପାଣି ବାହାରେ ।





ଚେର ପରା ଭୂଇଁ ତଳୁ ପାଣି ଟେକି ଆଣେ ।

ଫକିରା ଟିକେ ନ ବୁଝିଲା ଭଳିଆ ହେଲା । ଗୋବରା କହିଲା, ଆରେ ଏଇ କଥାଟା ବୁଝିପାରୁନୁ ? ସେ ଦିନ ମୋତେ ସରବତ ଦେଲାବେଳ କଥା ମନେ ପକୋଉନୁ ? କନାରେ ଛାଣିଲୁ । କନାଟା ଗିଲାସ ଦାଢ଼ରେ ଓହଳେଇ ଦେଲୁ । କନା ଭେଦି ଗିଲାସ ଭିତରୁ ପାଣି ପଦାକୁ ଆସିଲା । ତଳେ ଥପ୍ ଥପ୍ ପଡ଼ିଲା । ଏ କେମିତି ହେଲା ? ସେଇମିତି ପରା ଚେର ଭୂଇଁତଳୁ ପାଣିକୁ ଶୋଷି ଆଣେ । ନିଜେ ତ ଓଦା ହୁଏ, ପାଖଆଖର ମାଟିକୁ ବି ଭିଜାଇ ରଖେ ।

ଦିହେଁ ଏମିତି କଥା ହେଉଥାଆନ୍ତି । ଦେଖିଲେ ରାମ ନନା ସେ ବାଟେ ଯାଉଛି । ବାଁ ହାତରେ ଦୁଇଟା ତରାଟ ଫୁଲ । ଡାହାଣ ହାତରେ ଲୋଟା ।

ନନା କୁଆଡ଼େ ଯାଉଛ? ଗୋବରା ଓ ଫକିରା ଦୁହେଁ ଡାକିଦେଲେ ।

ଛି, ପଛରୁ ଡାକିଦେଲୁ ।

କି ଶୁଭ କାମକୁ ଯାଉଛ କି ନନା ? ଦୁହେଁ ପଚାରିଲେ ।

ରାମ ମିଶ୍ର କହିଲା, କିରେ, ତୁମେ ଦି'ଟା ଏ ଗାଆଁରେ ରହୁ ନା କି ? ଗାଁ ମଣ୍ଡରେ ବର ଅଶ୍ୱସ୍ତ ବାହାଘର ହେଲାଣି, ଜାଣି ନା କି ?

ଓଃ । ସେଇଠିକି ଯାଉଛ ? ଦୁହେଁ ପଚାରିଲେ ।

ରାମ ମିଶ୍ର ଆଗକାଳର ଲୋକ ନୁହେଁ । ପାଠଶାଠ ପଢ଼ିଛି । ବଡ଼ ପାଟିରେ ପୂଜାପାଠ

ପଡୁଛି । ସେ କି ପୂଜା କରୁଛି, ଶୁଣି ହେଉଛି, ବୁଝି ହେଉଛି ।

ରାମନନା କହିଲା, ଯିଏ ଆମର ଭଲ କରେ ସିଏ ଆମର ଠାକୁର । ତା'କୁ ଆମେ ପୂଜା କରୁ । ଗଛଲତା ନଥିଲେ ଜୀବଜନ୍ତୁ ନଥାନ୍ତେ । ଗଛକୁ ପୂଜା କରିବାନି କାହିଁକି ? ଆଗକାଳରେ ରଜାମାନେ ପରା ସଡ଼କ କଡ଼ରେ ଗଛ ଲଗାଉଥିଲେ । ଗାଁଲୋକେ ପରା ଗାଁ ମୁଣ୍ଡରେ ତୋଟା ଛାଡୁଥିଲେ । ତୋଟାକୁ ଯେଭଳି କେହି କାଟି ନ ପକାନ୍ତି, ସେଥିଲାଗି ଗଛମୂଳରେ ଠାକୁରାଣୀ ବସେଉଥିଲେ । ଠାକୁରାଣୀ ବିଜେ କରିଛନ୍ତି । ଗଛ କାଟିବ କିଏ ? ବର-ଅଶ୍ୱତ୍ଥ ଗଛକୁ କାହିଁକି ବାହା କରୁଛୁ ? ଏଇଥି ପାଇଁ । ବାହା ହୋଇଛି ଜାଣିଲେ, କେହି କାଟିବେ ନାହିଁ । ମୁଁ ଯାଉଛି, ଆଉ ଗୋଟିଏ ପୂଜା କରିବି । ନୂଆ ପଣସ ଗଛଟା ବେଶ୍ ବଢୁଛି । ତା'ମୂଳରେ ଏ ଦି'ଟା ଫୁଲ ଚଢାଇବି । ପୂଜା ହୋଇଗଲା ନା, କେହି ଆଉ ସେ ଗଛକୁ କାଟିବେ ନାହିଁ ।

ଏତିକି କହି ରାମନନା ତା ବାଟରେ ଚାଲିଗଲା । ଗୋବରା ଭାବିଲା ରାମନନାଙ୍କ ଭଳି ଲୋକ ବାହାରୁ ନାହାନ୍ତି କାହିଁକି ? କେତେ ଦିନରୁ ଗାଁଟାଯାକ ଗଛରେ ପୂରି ଉଠନ୍ତାଣି । ଶୀତଳ ଲାଗନ୍ତା । ଛାଇ ମିଳନ୍ତା । ଧୂଳି ଉଡ଼ନ୍ତା ନାହିଁ । ବାରମାସ କାଠ ବି ମିଳନ୍ତା ।

ଗୋବରା ଗୁମ୍ ରହିଥିଲା । କ'ଣ ମନେ ମନେ ଭାବୁଛୁ କି ? ଫକିରା ପଚାରିଦେଲା ।

ଗୋବରା କହିଲା, ମୁଁ କ'ଣ ଭାବୁଥିଲି କି ? ରାମନନା ସବୁ କହିନାହିଁ । ଗଛ ଛାଇରେ ବାଟୋଇ ବସିବେ । ଆମେ ତ ଦେଖିଛୁ । ଆମେ ତ ଦେଖୁଛୁ । ଆମେ ଦେଖିପାରୁନାହୁଁ ଏମିତି ବହୁତ କାମ ଗଛମାନେ କରୁଛନ୍ତି । ସେଦିନ ମାଷ୍ଟରେ କହୁଥିଲେ, ଗଛଯୋଗୁ ମଣିଷ ଜାତି ବଞ୍ଚିଛି । ଗଛ ମୂଳପୋଛ କରିଦିଅ, ମଣିଷ ବି ମୂଳପୋଛ ହୋଇଯିବ । ଭଲ ପବନ ନହେଲେ ଆମେ ମରିଯିବା । ନିଆଁରୁ ଯୋଉ ଧୂଆଁ ବାହାରୁଛି ସେଗୁଡ଼ା ବିଷ । ତାକୁ ଗଛଲତା ମାନେ ନିଅନ୍ତି । ଶାଗୁଆ ପତର ଏ କାମ କରେ । ଗଛର ପତର ଗୋଟିଏ ଗୋଟିଏ ଚୁଲି । ଖରା ତାର ଜାଳ । ଚେର ପାଣି ଆଣିଦିଏ । ଧୂଆଁ ଭଳି ଖରାପ ପବନକୁ ପତର ରାନ୍ଧିଦିଏ । ନିଜର ବଢ଼ିବାର ଜିନିଷ ତିଆରି କରେ, ରକମ ରକମର କାଠ, ଶସ, ଫଳ ଆଉ ଫୁଲ । ଆଉ ଆମେ ? ନିଜ ଦେହ ବଢ଼ିବା ଲାଗି କିଛି କରିପାରୁନା । ହେଲେ ଗଛରୁ ତା ଜିନିଷ ଛଡ଼େଇ ଆଣି କଞ୍ଚା ଖାଉଛୁ । ନହେଲେ ରାନ୍ଧିଖାଉଛୁ । ଜାଳ କରୁଛୁ । ଘରଦୁଆର, ବାଡ଼ବତା କରୁଛୁ । ଏସବୁ ଚୋରି । ଆମେ ଗଛଠୁ ଚୋରି କରୁଛୁ । ଗଛକୁ ଝୁଣି ଝୁଣି ଖାଇଯାଉଛୁ ।



ନୂଆ ପଣସ ଗଛଟା ବେଗି ବଢୁଛି । ତା'ମୂଳରେ ଏ ଦି'ଟା ଫୁଲ ଚଢ଼ାଇବି ।

ଆମ ନାକରୁ ଯୋଉ ପବନ ବାହାରିଯାଉଛି ସେ ତ ବିଷାକ୍ତ । ଅଙ୍ଗାରଜଳା ପବନ ଭଳି । ଗଛଲତା ତାକୁ ନିଜ କାମରେ ଲଗାନ୍ତି । ବଦଳରେ ଭଲ ପବନ ଛାଡ଼ନ୍ତି । ଏହି ପବନ ଆମର ଦରକାର । ତା ନାଁ ହେଉଛି ଅମ୍ଳଜାନ । ଦୁନିଆରେ ଗଛ ସବୁ ସରିଯିବ ତ ଅମ୍ଳଜାନ ଆଉ ତିଆରି ହେବ ନାହିଁ । ଚାରିଆଡ଼ ବିଷାକ୍ତ ପବନରେ ପୂରିଯିବ । ମଣିଷ ତ ମରିବ । ସବୁ ଜୀବଜନ୍ତୁ ବି ମରିବେ ।

ତୁ ତ ବେଶ୍ ବଡ ବଡ କଥା କହୁଛୁ ? ଗୋବରା ଥଟ୍ଟା କଲା ଭଳି କହିଲା । ମୁଁ ଜାଣିଛି, ଗଛ ନଥିଲେ ଛାଇ ନଥିବ । ନିର୍ଘୁମ ଖରା ହେବ, ଚାଷବାସ ପୋଡ଼ିଯିବ । ଆମ ପୂରବପୁରୁଷମାନେ ଏ କଥା ଜାଣିଥିଲେ । କହୁଥିଲେ, ଗଛଲଗା, ଧରମ ହେବ । ଗଛ କାଟି ଆମେ ପାପ କରୁଛୁ ।

ଗାଁରେ ମେଳା ହେବ । ଏ ଖବର ସମସ୍ତଙ୍କୁ ଜଣାଇ ଦିଆଯାଇଥିଲା । ମନ୍ତିରୀ ଆସିଲେ ମେଳାର ଶୁଭ ଦେବେ । ଗାଁର ଏ ଗୋଟିଏ ବଡ଼ ମଉଛବ । ଯେଉଁମାନେ ବାହାରେ କାମ କରୁଛନ୍ତି ସେମାନଙ୍କୁ ଡକା ହୋଇଛି ।

ଗୋବରା ବସ ରାସ୍ତାକୁ ଅନାଇ ଦେଲା । ଦେଖିଲା ନିଧିଆ ଆସୁଛି । ସେ ପାଲଲହଡ଼ାରେ

କାଠ ବେପାର କରେ ।

ତା ହାତରେ ଛତାଟିଏ । ଗୋବରା ପଚାରିଲା,ଏ କ'ଣ ?

ନିଧିଆ କହିଲା, ବାହାରିଲାବେଳେ ବରଷା ହେଉଥିଲା ମ ।

ତୋର ସେଠି ବରଷା ହୋଉଛି ? କେମିତି ମ ? ଏଠି ତ ଶୁଖିଲା ।

ନିଧିଆ କହିଲା, ଗୋବରା ଭାଇ, ତୁମେ କାହୁଁ ଜାଣିବ ? ଆମ ରାଇଜରେ ଯଦି କୋଉଠି ଭଲ ଜଙ୍ଗଲ ଅଛି, ସେଟା ହେଉଛି ପାଲଲହଡ଼ା । ଜଙ୍ଗଲମାନେ ବରଷା ।

ଫକିରା ତାଟକା ହେଇ ଅନେଇଲା । ଏ କ'ଣ ପୁଣି ଗଛର ଗୁଣ ବାହୁନିବ ନା କ'ଣ ?

ନିଧିଆ କହିଲା, ସବୁ ପାଠ ଭୁଲିଗଲୁଣି କି ଗୋବରା ଭାଇ ? ଆମ ଦେହ ଭଳି ଗଛର ଦେହ । ଗଛରୁ ବି ଝାଳ ବୁହେ । ଆମ ଚମରେ କେତେ ରୁମ । ପ୍ରତି ରୁମ ମୂଳରେ କଣା । ସେଇଠୁ ଝାଳ ବାହାରେ । ପତରରେ ସେମିତି ଗୁଡ଼ିଏ କଣା । କଣାବାଟେ ପାଣି ବାହାରେ, ବାମ୍ଫ ହୋଇଯାଏ । ଉଡିଯାଏ । ତୋ ପୁଅ ସେଦିନ ସୂରୁଯମୁଖୀ ଗଛ ଲଗେଇଥିଲା ନା ? ବଢ଼ି ବଢ଼ି କେତେ ବଡ଼ ହେବ ? ସେ ପୁଣି ଦିନକୁ ଅଧଲିଟର ଝାଳ ଛାଡ଼େ । ଦି ଗିଲାସ ପାଖାପାଖି । ଚେରବାଟେ ଭୂଇଁରୁ କେତେ ପାଣି ଶୋଷୁ ନଥିବ । ଜଙ୍ଗଲରେ ବଡ ବଡ ଗଛ । କେତେ ପାଣି ଛାଡୁଥିବେ ? ଭାବି ପାରୁଛୁ ? ଏ ସବୁ ବାମ୍ଫ ହୋଇ ଆକାଶକୁ ଉଠୁଛି । ଉଚକୁ ଗଲେ ଥଣ୍ଡା ହୋଇଯାଉଛି, ମେଘ ପାଲଟୁଛି । ବରଷା ହେଉଛି । ଏଇଥିପାଇଁ ଜଙ୍ଗଲଥିବା ଯାଗାରେ ବେଶି ବରଷା ହୁଏ ।

ଆଉ ଗୋଟିଏ କଥା । ନିଧିଆ ବୁଝେଇଲା । ଜଙ୍ଗଲ ସଫା ହୋଇଯିବ ତ ଭୂଇଁଟା ତାତି ଯିବ । ତା'ଉପରେ ବାଦଲ ଯିବ ତ ଗରମ ହୋଇ ଉଡ଼ି ପଳାଇବ । ଯଦିବା ବରଷାକାଳରେ ବରଷା ହେଲା, ସାଙ୍ଗେ ସାଙ୍ଗେ ମାଟିରେ ଭେଦିଯିବ । ତତଲା ମାଟିରୁ ଗରମ ବାମ୍ଫ ବାହାରିବ । ଉପରକୁ ଉଠିବ । ସେଥିରେ ମେଘ ତଳକୁ ଖସିବ ନା ବରଷା ହେବ ?

ଗୋବରା ମୁହଁରୁ ବାହାରିପଡ଼ିଲା - ଏତେ କଥା ଅଛି । ସେଇଥିଲାଗି ଖାଲି ଗଛ ଲଗା ଗଛ ଲଗା ବୋଲି ସଭିଏଁ କହି ହେଉଛନ୍ତି ।

ଫକିରା କଥାଟାକୁ ବାଆଁରେଇ ନେଲା । ପଚାରିଲା,ଗୋବରା ଭାଇ, ଆମେ ତ ଗାଆଁରେ ମେଳା କରୁଛୁ । ମନ୍ତିରୀ କାହିଁକି ଆସୁଛନ୍ତି କି ?

ଏତିକି ତୁ ଜାଣିନାହୁଁ ?

ଫକିରା କହିଲା,ନାଁ । ମୁଁ ତ କାଲି ଶୁଣିଲି । ଗାଁ ମୁଣ୍ଡରେ ମିଟିଙ୍ଗ୍ ହେବ । ନଣ୍ଡା ପାହାଡ ତଳେ । ଗୋବରା କହିଲା, ଆମ ଗାଁରେ ସରକାର ନୂଆ ବିହନ ଦୋକାନ ଖୋଲୁଛନ୍ତି । ସେ ଶୁଭ ଦେବେ ।

ବିହନ ତ ସାହି ପଡ଼ିଶା ଚାଷୀଙ୍କଠୁ ମିଳୁଛି । ଦରକାର ପଡ଼ିଲେ ଫାରମରୁ ଆଣୁଛୁ,ଦେକାନଟିଏ ଅଧିକା କ'ଣ କରିବ ?

ଗୋବରା ହସିଦେଲା । ଭାବିଲା, ଆଗକାଳରେ କିଛି କହିଦେଲେ ଲୋକ ମାନିନେଉଥିଲେ । ଏବେ ସବୁକଥାରେ ଇଆଡୁ ସିଆଡୁ ପଚାରୁଛନ୍ତି । କାହିଁକି ହେଉଛି ଜାଣିବାକୁ ଚାହୁଁଛନ୍ତି । ସେ ବୁଝେଇଲା, ନୂଆ ବିହନ ବିକିରୀ ହେବ । ନୂଆ ବିହନ । ଅଳପ ଦିନରେ ଫସଲ । ନାଆଁଟା କ'ଣ ଭୁଲିଗଲିଣି ।

ଫକିରା ବଳି ପଡ଼ି କହିଲା, କାହିଁକି ? ଆମେ ତ ଚାରିମାସିଆ ଧାନ କଲୁଣି, ଆଗଭଳି ଛଅ ମାସିଆ ଧାନ କେତେ କରୁଛନ୍ତି ?

ଗୋବରା ବୁଝେଇଲା, ଚାରିମାସ କ'ଣ କମ୍ ହେଲାଣି ? ଏତେଦିନଯାକ ଯଦି ବର୍ଷା ନ ହେଲା ? ସେଇଥିଲାଗି ନବେ ଦିନିଆ ବିହନ ବାହାରିଲାଣି ।

ତା'ମାନେ ଆହୁରି ମାସେ କମିଯିବ ? ବେଶ୍ ତ । ଅଢେଇମାସ ବରଷା ହେଲେ ହେଲା । ଆଉ ଡର ରହିବ ନାହିଁ ।

ଏମାନେ ସବୁ କ'ଣ କଥା ହେଉଛନ୍ତି । ଜାଣିବାକୁ ରହେମତ ଅଳି ଅଟକିଗଲା । ଗାଆଁର ବୁଢାମାନଙ୍କ ଭିତରେ ସେ ବଡ଼ । ବହୁତ କଥା ଦେଖିଛି । ଗୋବରା ଆଉ ଫକିରାଙ୍କ କଥା ଶୁଣିଲା । ରହେମତ୍ କହିଲା, ତୁମେଗୁଡ଼ା ତ କାଲିକା ଛୁଆ । ଆଗକାଳ କଥା କ'ଣ ଅଛି ? ଯେତେ ଯାହା କର, କିଛି ଅଣ୍ଟୁ ନାହିଁ । କଳିଯୁଗ ସରିଆସିଲାଣିରେ । ସମସ୍ତେ ମରିବେ । ଯେମିତି ପୋକମାଛି ମରନ୍ତି ।

ରହେମତ୍ ଡଗ ଡଗ କରି କହିଗଲା । ଦେଖୁନ ଗତ ବର୍ଷ କ'ଣ ହେଲା । ମାଘ ଫଗୁଣରେ ଏତେ ବର୍ଷା ହୁଏ ? ହେଲା ତ ହେଲା । ପୁଣି ଚଇତ-ବଇଶାଖରେ ଲାଗି ରହିଲା । ଜଇଷ୍ଠମାସକୁ ଚାଷ ଜୋରସୋରରେ ଆରମ୍ଭ ହେବା କଥା । ସେତିକିବେଳେ ନିଆଁଲଗା ବରଷା ଚୁପ ହୋଇଗଲା । ଧାରା

ଶିରାବଣଟା ଭୂଇଁଫଟା ଶିରାବଣ ହୋଇଗଲା । ଏଥିରେ ଧାନ ରହିବ ? ଯାହା କିଛି ବଢି ନଥିବ ନୋକସାନ ହବନି ତ ଆଉ କ'ଣ ହେବ ?

ଗୋବରା କହିଲା, ଚାଚା । ଏ ଅକାଳକୁ ଆମେ ଡାକି ଆଣିଛୁ । ଆମେ ଭୋଗିବୁନି ତ କିଏ ଭୋଗିବ ? ଗଛ ତ ଗଲ । ବଣ-ବଗିଚା ପୋଡ଼ି ଦେଲୁ । ଜଙ୍ଗଲ୍ ସଫା କରି ଚାଷ କଲୁ । ଛୋଟ ଛୋଟ ଗଛ ଯାହାଥିଲା ତାକୁ ବି ନିଆଁ ଲଗେଇଦେଲୁ । ଗଛପତର ତ ରହିଲା ନାହିଁ, ଥଣ୍ଡା ହେବନି କି ବରଷା ହେବନି । ଆମେ ପୁଣି ଚାରିଆଡ଼େ ନିଆଁ ଲଗଉଛୁ । ଗାଡ଼ି ଚାଲୁଛି ତା'ଭିତରେ ନିଆଁ । କଳ କାରଖାନା ଚାଲୁଛି ସେଠି ନିଆଁ । ଚାରିଆଡ଼େ ଗରମ ପବନ । ଏ ତ ସବୁ ଆମରି କାମ ।

ଫକିରା କହିଲା, ରହେମତ୍ ଚାଚା । ତୁମ ଛୁଆବେଳେ କ'ଣ ଏମିତି ହେଉଥିଲା ?

ଠିକ୍ କହୁଛୁ ବେଟା । ଆମ ବାପ ଅଜା ଅମଳରେ ଏତେ ଲୋକ କୋଉଠୁ ଥିଲେ । ଗଣି ଦେଉନୁ ? ପୁରୁଣା ଘର କେତେଟା ? ତିନି କୋଡ଼ି ବି ହେବ ନାହିଁ । ନୂଆଘର କେତେ ହେଲାଣି ଦେଖ୍ । ଛଅ କୋଡ଼ିରୁ ବେଶି । ଜମି ତ ଯେତିକି ସେତିକି । ସେପୁଣି ଭାଗ ହେବାରେ ଲାଗିଛି । ଭାଇ ଭାଗ ତ ଝିଅ ଭାଗ । ପୁଣି ବିକିରିବଟାରେ ଭାଗ । ଦେଖୁନୁ, କେତେ ହିଡ଼ ? ଗାଆଁରେ ଘର ବଢ଼ିଚାଲିଛି । ସହରଗୁଡ଼ାକ ତ ମାଡ଼ି ଆସୁଛି । କେତେ ଗାଆଁ ତ ଉଭାନ ହୋଇଗଲାଣି । ମୁଠାଏ ଅଧିକ ଜମି ମିଳିବ ବୋଲି ଗଛ ଲତା ସଫା କରିଦେଲୁ । ଘରଡିହରେ ବି ଗଛଟିଏ ରଖିଲୁ ନାହିଁ । ସହରରେ ଯେମିତି, ଏଠି ସେମିତି । ଖାଲି ଘର ଆଉ ଘର । ଗଛ ପତର ନାହିଁ ।

ଆମେ ଚାରିଆଡ଼େ ନିଆଁ ଲଗଉଛୁ । ଚାରିଆଡ଼େ ଗରମ ପବନ ।



ଏ ଯୋଉ ନଣ୍ଡାମୁଣ୍ଡିଆ ପାହାଡ଼ଟା । ତା ନାଁ ଏମିତି କାହିଁକି ହେଲା ? ଆଗରୁ ସେ ପାହାଡଟାରେ ବି ବଣ ଥିଲା । ଗାଁ ଲୋକେ ତ ସବୁ ସଫା କରିଦେଲେ । କ'ଣ ନା ଜାଳ ପାଇଁ ଯିବୁ କେଉଁଠିକୁ ?

ରହେମତ୍ ପୁଣି କହିଲା, ମୁଁ ତ ମକ୍ତବରେ ପଢ଼ିଲାବେଳେ ପାହାଡ଼ତଳେ ଆମ୍ବ ବଗିଚା ଥିଲା । ବଡ ବଡ ଆମ୍ବ ମିଳୁଥିଲା । ମଣିଷମୁଣ୍ଡିଆ ଆମ୍ବ । ଏବେ ସେମିତିକିଆ ଆମ୍ବ କାହିଁ ? ସେମିତି ଗଛ ବି କାହିଁ ?

ଫକିରାକୁ ଆଙ୍ଗୁଠି ଦେଖାଇ ରହେମତ୍ କହିଲା, ତମ ବାଡ଼ିରେ ପରା କେଡ଼େ ମିଠା ଖଜା ପଣସ ଥିଲା । ଆଠ ଦଶଟା ତାଳ ଗଛ ବି ଥିଲା । ତୋ ବାପା କ'ଣ ରଖିଲା ? ପଣସ ଗଛଟାକୁ ଜାଳ କଲା । ତାଳ ବଗିଚାଟା ତ ରାମ କିଣିଛି । ତା'ନୂଆ ଘରଟା ପରା ସେଇଠି ଉଠିଛି ।

ଫକିରା କହିଲା, ବାପା କରନ୍ତେ କ'ଣ ? ଭଉଣୀ ବାହାଘର କେମିତି ହୋଇଥାଆନ୍ତା ?

ଗୋବରା ଉପରେ ପଡ଼ି କହିଲା, ଲୋକେ ଯେପରି ବଢୁଛନ୍ତି । ହାଉଯାଉ ହେଉଛନ୍ତି । ଦୁନିଆରେ କିଛି ରଖାଇ ଦେବେ ନାହିଁ । ସଗର ବଂଶ ପରା ? ଶେଷକୁ ମାଟି ଖାଇ ଯିବେ । ମଣିଷ ହାଉଯାଉ ହେଲେ ଆଉ କେହି ରହିପାରିବେ ନାହିଁ । ଗଛଲତା ହେଉ କି ପଶୁ ହେଉ । ଚଢ଼େଇ ବି । ମନେ ରଖିଥା, ଆଉ କେହି ନ ରହିଲେ ମଣିଷ ଜାତି ବି ରହିବ ନାହିଁ ।

ଆଲା ଯାହା କିଛି କରେ, ଭଲ ପାଇଁ । ମଣିଷ ତାକୁ ଖରାପ କରିଦେଉଛି । ଆଲା କିମିତି ଭଲ ଆଖିରେ ମଣିଷକୁ ଦେଖିବ ? ଆମେ ନିଜେ ତ ଅକାଳକୁ ଟାଣି ଆଣିଛୁ ।

ଫକିରା କହିଲା, ରହେମତ୍ ଚାଚା, ଅଦିନିଆ ବରଷା କଥା କହୁଥିଲ ନା ? ଅଦିନିଆ ବରଷାକୁ ଅଦିନିଆ ଧାନ ପରା ବାହାରିଲାଣି । ଅଳପ ବରଷା ହେଉ ନା, ତଥାପି ଚାଷ ହେବ ।

ଗୋବରା କହିଲା, ବରଷା କ'ଣ ହେଉନାହିଁ । ବରଷଯାକ ଯାହା ବରଷା ହେବା କଥା ହେଉଛି । ଗୋଟେ କଥା ଦେଖ୍ । ଧର ଦିନଯାକ ମୋର ବାଲଟିଏ ପାଣି ଦରକାର । ତୁ ମତେ ରାତିଅଧକୁ ବାଲଟିଏ ପାଣି ଦେଲୁ । ମୁଁ ଚଳିବି କିମିତି ? ମଝିରେ ମଝିରେ ଗିଲାସେ କି ଲୋଟାଏ ମିଳିଲେ ଦିନଯାକ ସିନା ବାଲ୍‌ଟିଏ ହୁଅନ୍ତା । ଏକାଥରେ ବାଲ୍‌ଟିଏ ଦେଲେ କିମିତି ଚଳିବି ? ବରଷଯାକର ବରଷା ମାସକ ଭିତରେ ହେଲେ କଣ ହେବ । ମଝିରେ ମଝିରେ ନ ହେଲା ତ ଗଛ ଶୁଖିଯିବ । କ୍ଷୀର

ଢ଼ୋକିଲାବେଳେ ଟାଣ ଖରା ହେଲେ ତ ଗଛ ମଲା । ଜୋର ପବନ ହେବ ତ ଫୁଲ ଝଡିଯିବ । ଅଗାଡି ଗଛ, କି ମଲା ଗଛ ଉପରେ ନଈବଢ଼ିଆ ବରଷା ହେଲେ ଲାଭ କଣ ?

ଗୋବରା କହିଲା, ଆଜି ବିହନ ଦୋକାନ ଖୋଲାଯିବ । ମନ୍ତିରୀ ଆଉ ଯାହା କହନ୍ତୁ ନା କାହିଁକି, ଦୁଇଟା କଥାରେ ଜୋର ଦେବେ । ଆମେ କେମିତି ଅକାଳକୁ ଡାକି ଆଣିଛୁ । ବେଳ ଖରାପ ପଡିଛି, ନୁହେଁ । ଆମେ ଖରାପ କରି ଦେଇଛୁ । ବେଶି ଗଛ ପତର ଲଗାଅ, ପିଲାଛୁଆ କମାଅ । ଆପେ ଆପେ ଭଲ ବେଳ ଆସିଯିବ । ଆମ ବେଳରେ କିଁଛି କଲେ, ଆମ ପିଲାଛୁଆଏ ଭଲରେ ରହିବେ । ଅକାଳ ପଡିଛି ବୋଲି ଉପରକୁ ଚାହିଁ ବସିଥିବା ? ନା । ଅଳପଦିନରେ ଯୋଉ ଫସଲ ଉଠିବ ତାକୁ କର । କେବଳ ଧାନ, ଗହମ, କି ବିରି, ସୋରିଷ ନୁହେଁ । କି ଆଖୁ, କପା ନୁହେଁ । ନିଜ ବାଡିବଗିଚାରେ ଫଳଗଛ ଲଗାଅ । ଏମିତି ଗଛ ବାହାରିଗଲାଣି ଅଳପ ଦିନରେ ହାତ ପାଆନ୍ତାରେ ଫଳ ମିଳିବ । ନଡିଆ, ଆମ୍ବ, ପଣସ, ପପେୟା, ପିଜୁଳି, ସପେଟା । କେତେ କଣ । ଆଗ କାଳରେ ଚାରିମାସ ବରଷା ହେଉଥିଲା ଯେ ଚତୁର୍ମାସିଆ କହୁଥିଲ । ଏବେ ତ ଦି ମାସ ବି ଲାଗ ଲାଗ ବରଷା ହେଉନି । ଯୋଉ ଫସଲ ଦୁଇମାସ ଭିତରେ ଠିଆ ହୋଇଯିବ ତାକୁ ଲଗା । କିଛି ମିଳିବ । ବେଶି ଦିନିଆ ଧାନ



ମୁଠାଏ ଅଧିକ ଜମି ମିଳିବ ବୋଲି ଆମେ ଗଛଲତା ସଫା କରିଦେଲୁ ।



ଏ ଯୋଉ ନଣ୍ଡାମୁଣ୍ଡିଆ ପାହାଡ଼ଟା । ତା ନାଁ ଏମିତି କାହିଁକି ହେଲା ?

ଲଗାଇଲେ ବେଶି ଅମଳ ହେବ, ଏ କଥା ଭୁଲ୍ ଯା । ପାଣି ନ ପାଇଲା ତ ମୂଳରୁ ଯିବ । ସେତିକି ନୁହେଁ, ବେଶିଦିନିଆ ଧାନରେ ଯେତେ ପାଣି ମଡାଇବ ନା, ସେତିକି ପାଣିରେ ଅଳପଦିନିଆ ଧାନ ଦି' ଦି' ଥର ହୋଇପାରିବ ।

ରହେମତ୍ ବୁଢ଼ା ବୁଝିଲା । କହିଲା, ଭଲ କଥା ଯେ । ଖାଲି, ତୁମେ ସବୁ ବୁଝିଲେ ହେଲା । ଆମ ବଅସ ତ ଗଲାଣି ।

ଏମିତି କହି କହି ରହେମତ୍ ବୁଢ଼ା ବାହାରି ଯାଉଥିଲା । ଦେଖିଲା, ଶଗଡଟିଏ ଆସୁଛି । ପାଟିକରି ଉଠିଲା, ଆରେ ମାଧ ଫେରୁଛି ରେ ।

ମାଧ, ରହେମତ୍‌ର ପାଖାପାଖି ବୟସ ହେବ । ହେଲେ, ମାଧକୁ ଆଗ ଚାଳିଶା ଧରିଲା । ଆଖିରେ ପରଳ ପଡିଗଲା । ବେଳ ଆସିଲା, କିଛି ଦେଖି ପାରିଲା ନାହିଁ ।

ହରିପୁର ଗାଁରେ ଆଖି କେମ୍ପ ପଡିଛି ଶୁଣିଲା । ଜିଦି ଧରିଲା, ଯିବ । ମାଗଣାରେ ଡାକତର । ମାଗଣା ଓଷଧ । ନୂଆ ଚଷମା ଦେବେ । ଦୁନିଆକୁ ସେ ପୁଣି ଦେଖିପାରିବ । ନାତି ନାତୁଣି ମୁହଁ ଦେଖିବ ।

ରହେମତ୍ ଋଚାର ପାଟିରେ ସଭିଏଁ ସେ ଆଡେ ଚାହିଁଲେ ।

ଗାଡି ପାଖ ହେଲା । ବଳଦ ଅଟକିଲେ । ମାଧର ଆଖିରେ ମୋଟା ଚଷମା । ଚାଦରଟିଏ ମଥାରୁ ଆଖିଯାଏ ଘୋଡେଇଛି । ଖରାଧାସ ଯେପରି ଆଖିରେ ନ ପଡେ ।

ସବୁ ଭଲ ତ ? ରହେମତ୍ ମାଧକୁ ପଚାରିଲା ।

ମାଧ କହିଲା ଟିକିଏ ଝାପସା ଦେଖାଯାଉଛି । ଡାକତର ବାବୁ କହିଛି କିଛିଦିନ ଭିତରେ ଭଲ ଦେଖାଯିବ ।

ଓଷଧ ପୋଷଦ କିଛି ଆଣିଛୁ ତ ?

ମାଧ କହିଲା, ଡାକତର ତ ନବଜିଆ ଲୋକ କହିଲେ,ତମ ଘରେ ତ ଓଷଧ ଅଛି ।

ରହେମତ୍ କହିଲା, ତୁ କଣ ରଖିଛୁ କି ?

ନାଁ ମ । ଡାକତର ବାବୁ କହିଲେ, ଆମ ବାଡିର ସଜନା, ପପେୟା ଆଉ କଦଳୀ ଏସବୁ ମହୋଷଧି । ସେ କଣ ଜାଣିଛନ୍ତି, ଆମେ ସବୁ ପଦା କରି ଦେଲୁଣି । ବାଡି ଶୂନ୍‌ଶାନ ।

ରହେମତ୍ ବୁଢ଼ା ବୁଝିଲା ନାହିଁ । ପଚାରିଲା,ସେଗୁଡା କିମିତି ଓଷଧ ମ ।

ସଜନା ଶାଗ, ସଜନା ଛୁଇଁରେ ଭିଟାମିନ୍ ଅଛି । ଆଖିର ତେଜ ବଢ଼େଇବ ! ଛୁଆବେଲୁ ଖାଇଲେ ଚାଳିଶା ହେବନି ।  ଦେହଲାଗି ଯେତେ ଯାହା ଦରକାର କଦଳୀରୁ ମିଳିବ । ଯଦି ପେଟ ଗୋଳମାଳ ହେଲା, ପପେୟା କ୍ଷୀର ନା - କୁଆଡେ ସବୁ ହଜମ କରିଦେବ ।

ଏମିତି କହି କହି ରହେମତ୍ ଚାଚା ବାହାରି ଯାଉଥିଲା । ଦେଖିଲା, ଶଗଡ଼ଟିଏ ଆସୁଛି ।





ପାଠପଢ଼ା ପୁଅ ସଂବାଳୁଆ ହୋଇଛି ବୋଲି ସଜନା ଗଛଟା କାଟିଦେଲା ।

ରହେମତ୍ କହିଲା, ଏତେ କଥା ଅଛି ? ସତରେ ଆମ ବାପ ଦାଦାମାନେ ଏକଥା ଜାଣିଥିବେ । ନହେଲେ ବାଡିରେ ଆଉ କିଛି ଲଗା ହେଉ ନହେଉ ସଜନା, କଦଳୀ ପପେୟା ନିହାତି ଲଗା ହେଉଥିଲା ।

ମୁଁ କେତେ ବୁଝେଇଲି । ଆମ ଗଡ଼ିଆଟାକୁ ପୁଅ ପୋତିଦେଇଛି । କହିଲା ଢ଼ିହ କରିବ । ଗଡ଼ିଆଟା ଥିଲା ଯେ ପଙ୍କ କାଦୁଅ କାଢ଼ି ବନ୍ଧରେ ପକାଉଥିଲୁ । କଦଳୀ, ପପେୟା ହେ ଉଥିଲା । ପାଠପଢ଼ା ପୁଅ ଯୁଟିଲା ଯେ ସଂବାଳୁଆ ହୋଇଛି ବୋଲି ସଜନାଟା କାଟିଦେଲା ।

ରହେମତ୍ ବଡ ହାଇଟିଏ ଛାଡିଲା । କହିଲା, ଆମେ ସବୁ ପରା ଜାଣିଶୁଣି ଅକାଳକୁ ଡାକି ଆଣିଛୁ ।

ପଇସା ନାହିଁ, ଔଷଧ କିଣିବାକୁ । କହିଲୁ ନାହିଁ ?

ମାଧ କହିଲା, ମୁଁ ଯେତେ ବୁଝେଇଲି ଡାକତର ବାବୁ ମୋତେ ସେତେ ବୁଝେଇଲେ । ବଜାର ଓଷଧ ଦେହରେ ଯିବ ନାହିଁ । ସବୁ ଝାଡାରେ ଯିବ । ବୁଢ଼ା ବଅସ ତ । ଡାକତର କହିଲେ ଖାଇବାଟାକୁ ଜଗ ।

ରହେମତ୍ କହିଲା, ଏ ବୁଢ଼ା ବୟସରେ କେତେ ଖାଇବୁ ? ହଜମ କରି ପାରିବୁ ତ ?

ମାଧ ଚଅଟକିନା କହିଲା, ମୁଁ ବି ସେଇକଥା ଡାକତରକୁ କହିଲି । ସେ ତ ଠୋ କରି ହସିଦେଲେ । କହିଲେ, ତିଅଣରେ ଯଦି ଅମୃତ ଭଣ୍ଡା ପଡିଛି ବଦହଜମ ରହିବ ନାହିଁ । ଗଛ ନାହିଁ ବୋଲି କହିଲି ଯେ ସେ ତ ଚମକି ପଡିଲେ । ଗାଁ ଗୁଡାକ କଣ ଟାଙ୍ଗର ହୋଇଗଲାଣି କି ? ଏବେ ଲଗାଉନ, ଛଅ ମାସ ଭିତରେ ଫଳ ଫଳିବ । ସଜନା ହେଉ କି କଦଳୀ ହେଉ କି ଅମୃତ ଭଣ୍ଡା ହେଉ । ସବୁ ।

ରହେମତ କହିଲା, ମୁଁ ତ ବୁଢ଼ା ହେଲିଣି । ଆମ ଲୋକେ ଗଛପତର ସଫା କରିଦେଲେ । ଏବକାର ପିଲାଏ ବହୁତ କଥା ଜାଣିଲେଣି । ଗଛପତର ଲଗାନ୍ତୁ - ଖରାପବେଳ ଚାଲିଯିବ । ଭଲ ବେଳ ଆସିବ । ଆମେ ତ ଅକାଳକୁ ଡାକି ଆଣିଛୁ । ଆମେ ଭୋଗିବୁ ନାହିଁ ତ ଭୋଗିବ କିଏ ?

Printed at Kay Cee Printing & Allied Industry, N.D. 20

